ଗୁଣିଗଣାଗ୍ରଗଣ୍ୟ କବିକୁଳ ଚୂଡ଼ାମଣି

# ରାୟ ମଧୁସୂଦନ ରାଓ ବାହାଦୁରଙ୍କର

ମୃତ୍ୟୁ ଉପଲକ୍ଷେ ରଚିତ ।

( ରାଗ ରାମକେରୀ । )

ଆହା କି ଯୋଗେ ବିଭାବରୀ ପ୍ରଭାତିଲା ବିଶ୍ୱରେ ।
ଅକାଳେ ଅଶନି ଖସିଲା ଚଡ଼ଚଡ଼ ନାଦରେ ॥ ୧ ॥
କାହିଁ ଥିଲା ଏହି ଦୁର୍ଯୋଗ ଲୁଚି କାଳ ଗର୍ଭରେ ।
ଜାଣିଥିଲେ ହୋଇ ନ ଥାନ୍ତା ଏଡ଼େ ଦୁଃଖ ମନରେ ॥ ୨ ॥
ଏ ଭୀଷଣ ଶାମ୍ବୁକ ବାଜିଣ ସର୍ବ ମରମଦେଶେ ।
କରିଅଛି ହତ ଚେତନ ଘୋର ଦୁଃଖ ଆବେଶେ ॥ ୩ ॥
ମରୀଚିକା ଯେହ୍ନେ କରଇ ଆଶା ଦେଇ ନିରାଶ ।
ତେସନ ଅଭାଗା ସନ୍ତାନେ ହେଲା ତବ ବିକାଶ ॥ ୪ ॥
ପ୍ରତି ଅଶ୍ରୁବିନ୍ଦୁ ମଧ୍ୟରେ ତବ ରୂପ ପ୍ରକାଶ ।
ଦେଖିଣ ଦ୍ୱିଗୁଣ ବଢ଼ଇ ସେହି ଶୋକଉଚ୍ଛ୍ୱାସ ॥ ୫ ॥
ଅନାଥ କରି ଛାଡ଼ିଗଲ ସର୍ବ ବିଦ୍ୟାମନ୍ଦିର ।
ଅହୋ କି କଲ କି କଲ ହେ ଅହେ ଶ୍ରୀ କବିବର ॥ ୬ ॥
ଓଡ଼ିଶାର ଆଶା ଭରସା ଥିଲା ତୁମ୍ଭର ହସ୍ତେ ।
ଅନାଥା ହୋଇଲା ଏବେ ତ ହରାଇ ପ୍ରିୟ ସୁତେ ॥ ୭ ॥
କାଲି *ଶ୍ରୀରାମଙ୍କୁ ହରାଇ ବସିଛି ଶୋକାନଳେ ।
ଆଜି କି ସେ ଆଉ ଉଠିବ ଏ ବାରତା ଶୁଣିଲେ ॥ ୮ ॥
'ହା ମଧୁ' 'ହା ମଧୁ' ବୋଲିଣ କାନ୍ଦିବ ଅଭାଗିନୀ ।
ଗଣ୍ଡେ ହସ୍ତ ଦେଇ ଦୁଃଖିନୀ, ତୁମ୍ଭ ଗୁଣକୁ ଗୁଣି ॥ ୯ ॥

ଅରନ୍ ରତନ ହଜିଲେ ନ ଦିଏ କି କଷଣ ।
କିଏ ଭୁଲି ପାରେ ସହଜେ ଥିବା ଯାଏ ଜୀବନ ॥ ୧୦ ॥
ଭସାଇଗଲ ଓଡ଼ିଶାକୁ ଏହି ଶୋକ ସାଗରେ ।
ବିଚାର ନ କଲ ତୁମ୍ଭେ ତ ତୁମ୍ଭ ଦିବ୍ୟ ଜ୍ଞାନରେ ॥ ୧୧ ॥
ଶୂନ୍ୟ ହୋଇଲା କବିକୁଳ ଏ ଉତ୍କଳ ଭୁବନ ।
ଆଉ କି ସତେ ସେ ପାଇବ ତୁମ୍ଭ ପରି ସନ୍ତାନ ॥ ୧୨ ॥
ଋଷି ହୋଇ ଜନ୍ମି ଥିଲତ ଏହି ମର୍ତ୍ତ୍ୟ ଭୁବନେ ।
ଜ୍ଞାନ ମାନ୍ୟ ଶୀଳ ଦାକ୍ଷିଣ୍ୟେ ନାହିଁ ସମାନ ଜଣେ ॥ ୧୩ ॥
କବି ଆସନ କଲ ପୂର୍ଣ୍ଣ ଯାଇଁ ସରଗ ପୁର ।
ଅଭାଗା ଉତ୍କଳ ମାତାଙ୍କୁ କରି ଗଲ ଅନ୍ତର ॥ ୧୪ ॥
ଏବେ ଉତ୍କଳ ବିଭାକର— ଆଜି ହେଲା ଗୋପନ ।
ଦଣ୍ଡଧର ଗାଢ଼ ତିମିର କଲା ତାକୁ ଆଚ୍ଛନ୍ନ ॥ ୧୫ ॥
ଅପାର କରୁଣା ତୁମ୍ଭର ନିତି ପଡ଼ୁଛି ମନେ ।
ସଦା ରଖିଥିବ ସେ ଭାବ ବସି ସ୍ୱର୍ଗ ଆସନେ ॥ ୧୬ ॥
କର ସମ୍ପୁଟେ କରି ମୁହିଁ ମେଲାଣି ହେଉଅଛି ।
ଦେଖୁ ଚକ୍ଷୁ ତୁମ୍ଭ ଓଡ଼ିଶା ଦୁର୍ଦ୍ଦଶା ଯାଉ ଦୂରି ॥ ୧୭ ॥
ପ୍ରଫୁଲ୍ଲ ମନେ ଫୁଲ ଯାନେ ବୁଧେ ନଅନ୍ତୁ ବରି ।
ବିଭୁ ବିଭୂତି କରୁଣାରେ ପାଅ ପଦ ତାଙ୍କର ॥ ୧୮ ॥

ଭିକ୍ଟୋରିଆ ସ୍କୁଲର ଜନୈକ ଛାତ୍ର
ଶ୍ରୀ ଯାମିନୀକାନ୍ତ ବଧାଣ ।

---

* ମୟୂରଭଞ୍ଜାଧିପତି ।

ତା ୨୮ । ୧୨ । ୧୨ ମସିହା ଶନିବାର ଦିବା ଘ ୯ ଘା ସମୟେ

# ମହାମାନ୍ୟବର କବିବର ରାୟ ମଧୁସୂଦନ ରାଓ ବାହାଦୁରଙ୍କ ପରଲୋକ ଗମନ ଉପଲକ୍ଷେ ରଚିତ ।

( ରାଗ ରସକୁଲ୍ୟା । )

୧

ଆହା କ କୁକ୍ଷଣେ          ପାହିଲା ନିଶି
ହରାଇ ବସିଲୁଁ          ଉତ୍କଳ ଶଶୀ
କାଳବହ୍ନି କାହିଁ          ଲୁଚିଣ ଥିଲୁ
ଏବା ସୁପ୍ରହରେ          ବାଦ ସାଧିଲୁ
    ହୋଇଲେ ବିଧାତା ବାମ
ଧର୍ମରାଜ ହୋଇ          ଅଧର୍ମୀ ହୋଇବେ
    ତୁ କି ପାଳିବୁ ନିୟମ

୨

ଉତ୍କଳ ଗୌରବ          ମଧୁସୂଦନ
ସର୍ବ ଗୁଣୋପେତ          ଦେବ ପ୍ରତିମ
ବ୍ରହ୍ମପଦେ ରତ          ଭକ୍ତ ପ୍ରବର
ଭକ୍ତି ଉପାଦାନେ          ଗଠିତ ଶରୀର
    ତେଣୁ ଦୁରନ୍ତ କଳୁଷ
ଶ୍ରୀଅଙ୍ଗ ସ୍ପର୍ଶନେ          ନାନା ଚେଷ୍ଟା କରି
    ହେଲା ବିଫଳ ପ୍ରୟାସ

୩

କ୍ରୂର କାଳ ତୁ ରେ          ଏଡ଼େ ଦାରୁଣ
ପାଷାଣୁ ବଳିକି          ତୋ ହୃଦ୍‌ତ୍ରାଣ ?
ପରଶିବା ତୁହେ          ନ ପାରୁ ସିଦ୍ଧ
ସଦା ଇର୍ଷାନଳେ          ହେଉ ତୁ ଦଗ୍ଧ
    କାମନା ତୋର ପୂରିଲା
କୋଟି ହୃଦ ଶୋକ          ସାଗରେ ଭସାଇ
    ତୋର କି ଲାଭ ହୋଇଲା ;

୪

କଟକ ନଗରୀ          ସେନ କୋଳରେ
ଦୁଃଖିନୀ ଉତ୍କଳ          କାନ୍ଦେ ବିକଳେ
କୋଠି ସୌଧ କାନ୍ଦେ          କୋଠି କୁଟିର
କାନ୍ଦେ କାଠଯୋଡ଼ୀ          ତଟିନୀ ତୀର
    ହରାଇ ଅମୂଲ୍ୟ ମଣି
ପାଷଣ୍ଡ ତୁ ! ତାହା          ବଳେ ହରି ନେଲୁ
    କରି ମାତାଙ୍କୁ ଅନାଥିନୀ

୫

ଊନବିଂଶ ଶତ          ଦ୍ୱାଦଶ ସାଲ
ଉତ୍କଳ ପକ୍ଷରେ          ହେଲୁ ତୁ କାଳ
ଯଦ ନ ଦେଉଣୁ          ଉତ୍କଳ ଧାମେ
ହରିଥିଲୁ ଯଦି          ଭଞ୍ଜ ଶ୍ରୀରାମେ *
    ଲଭି ନାହିଁ ଶୋକାନଳ
ଗୃହ ଧନ ମାନ          ବିଜୟ ଜାଣିଣ
    ଦେଲୁ ତହିଁ ଘୃତ, ତାଳ

୬

ସ୍ୱଇଚ୍ଛାରେ ଅବା          କରିଛିଲେକି
ଦେବଲୋକୁଁ ଶୁଣି          ଦେବଙ୍କ ଡାକ
ସ୍ୱର୍ଗେ ଥିଲା ଖାଲି          କବି ଆସନ
ଆନନ୍ଦେ ଯାଇଁ ତା          କଲ ମଣ୍ଡନ
    ଯାଇଥିଲେ ରଘୁନାଥ
ଦେବତା ବୋଲି କି          ଲୋଭ ସମ୍ଭବନ୍ତ
    ଦେଖିଲେ ସାର ପଦାର୍ଥ

୭

ଯାଇଅଛ ଦେବ !          ସ୍ୱର୍ଗଭୁବନ
ତ୍ୟଜି ସଂସାରର          ମାୟା ବନ୍ଧନ
ଅମୂଲ୍ୟ ଯା ଲାଗି          ସଦା ଚିନ୍ତିତ
ଯାର ଶ୍ରୀ ସାଧନ          ଜୀବନେ ବ୍ରତ
    କରି, ହରୁଥିଲ କାଳ
ସେହି 'ଭିକ୍ଟୋରିଅ'          ବିକଳେ କାନ୍ଦୁଛି
    ନାହିଁ କି ପୂର୍ବ ବାତ୍ସଲ୍ୟ

୮

ତବ ଆଶା ତବ          ହେଲା ପୂରଣ
ବ୍ରହ୍ମ ପାଦପଦ୍ମେ          ହୋଇଲ ଲୀନ
ପରଗରେ ପାଇ          ଦିବ୍ୟ ଆସନ
ଦେବତାଙ୍କଠାରୁ          ଲଭ ସମ୍ମାନ
    ଏତିକିମାତ୍ର ପ୍ରାର୍ଥନା
କଳପନା ତବ          ଜନମ ଭୂମିର
    କରୁ କଲ୍ୟାଣ କାମନା ।

ଶ୍ରୀ ବ୍ରଜବନ୍ଧୁ ମହାନ୍ତି
ଭିକ୍ଟୋରିଅ ସ୍କୁଲର ୧ମ ଶ୍ରେଣୀ ଛାତ୍ର ।

Mukur Press.

* ମୟୂରଭଞ୍ଜାଧିପତି ।

ওঁ

## ব্রহ্মকৃপাহিকেবলং

### ଜୟଜୟନ୍ତୀ—ଝାମ୍ପତାଳ ।

ନୟନ ଅତୀତ ସେହି   ପରଲୋକ-ମହାଳୟେ
ଆଉ ଯିବା ସଶରୀରେ   ତେଜି ସକଳ ସଂଶୟେ ।
ଆହା ସେ ଅମୃତ ଲୋକ   ନାହିଁ ଯହିଁ ମୃତ୍ୟୁ ଶୋକ
ଅନନ୍ତ ମିଳନଭୂମି ସର୍ବ ହୃଦୟେ ହୃଦୟେ ।
ଶୋକେ ଜର୍ଜରିତ ପ୍ରାଣ   କାହିଁକି ବ୍ରହ୍ମସନ୍ତାନ
'ଛନ୍ତି ସର୍ବେ ପ୍ରିୟଜନ ତହିଁ ପରମ ଆଶ୍ରୟେ ।
ଯୋଗୀ ଋଷି ମହାଜନ   କଲେ ଯହିଁକି ଗମନ
ଅମର ଅମୃତ୍ୟୁଜନ   ଯାଇଛନ୍ତି ସେ ନଲୟେ ।
ବତ୍ସ!ସେ ଆଶ୍ୱାସ ଲଭି   ଦେଖ ସେ ଅମୃତ ଛବି
ସେ ଧାମେ ଅମର ସର୍ବେ କଣି ଶୋକ ମୃତ୍ୟୁଭୟେ ।

---

### সিন্ধু বিজয়—তেওরা।

ঐ যে দেখা যায় আনন্দ ধাম,
অপূর্ব্ব শোভন ভব-জলধির পারে জ্যোতির্ম্ময়।
শোক-তাপিত জন সবে চল, সকল দুঃখ হবে মোচন;
শান্তি পাইবে হৃদয়-মাঝে, প্রেম জাগিবে অন্তরে।
কত যোগীন্দ্র ঋষি মুনিগণ, না জানি কি ধ্যানে মগন,
স্তিমিত লোচন কি অমৃত-রস পানে, ভুলিল চরাচর;
কি সুধাময় গান গাইছে সুরগণ, বিমল বিভুগুণ বন্দনা;
কোটি চন্দ্র তারা উলসিত, নৃত্য করিছে অবিরাম॥

---

### মিশ্র ইমন্ কল্যাণ—ঝম্পক।

দুঃখের বেশে এসেছ বলে' তোমারে নাহি ডরিব হে
যেখানে ব্যথা তোমারে সেথা নিবিড় করি ধরিব হে।
আঁধারে মুখ ঢাকিলে স্বামী
তোমারে তবু চিনিব আমি,
মরণরূপে আসিলে প্রভু, চরণ ধরি মরিব হে।
যেমন করে দাওনা দেখা, তোমারে নাহি ডরিব হে॥
নয়নে আজি ঝরিছে জল, ঝরুক জল নয়নে হে
বাজিছে বুকে, বাজুক্, তব কঠিন বাহু বাঁধনে হে।
তুমি যে আছ বক্ষে ধরে'
বেদনা তাহা জানাক্ মোরে,
চাবনা কিছু, কব না কথা, চাহিয়া রব বদনে হে
নয়নে আজি ঝরিছে জল, ঝরুক জল নয়নে হে॥

### ভৈরবী—একতালা।

তোমারি ইচ্ছা হউক পূর্ণ করুণাময় স্বামী।
তোমারি প্রেম স্মরণে রাখি, চরণে রাখি আশা,
দাও দুঃখ দাও তাপ, সকলি সহিব আমি।
তব প্রেম-আঁখি সতত জাগে, জেনেও জানি না;
ঐ মঙ্গল রূপ ভুলি তাই, শোক-সাগরে নামি।
আনন্দময় তোমার বিশ্ব, শোভা-সুখ-পূর্ণ;
আমি আপন দোষে দুঃখ পাই, বাসনা-অনুগামী।
মোহ-বন্ধ ছিন্ন কর, কঠিন আঘাতে;
অশ্রু-সলিল-ধৌত-হৃদয়ে থাক দিবস যামী॥

---

বল রে বল রে বল রে ব্রহ্মকৃপাহিকেবলং।
পাইলে ব্রহ্ম-কৃপার বিন্দু হইবে শীতলং।
হৃদয়-কাননে ফুটিবে ফুল, চারিদিক্ হ'বে সৌরভে আকুল;
ব্রহ্মকৃপাগুণে অবশ হৃদয় হইবে সবলং।

জীবনের যত পাপ তাপভার, ব্রহ্মকৃপাগুণে হ'বে ছারখার;
মরণ ঘুচিবে, জীবন পাইবে, হইবে নির্ম্মলং।

হইবে হৃদয়ে আনন্দ অপার, উথলিবে প্রেমসিন্ধু-পারাবার;
দেখেছ না যাহা দেখিবে এবার, হইবে বিহ্বলং।

কি ভয় ভাবনা ব্রহ্মকৃপাগুণে, কি করিবে শোক-তাপের আগুনে,
ব্রহ্মবলে বল কর সেই গুণে, হ'বে না বিফলং॥

---

মুকুর প্রেস, কটক।